# ଗାଳ୍ପସଙ୍କେତ



ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ର

ପ୍ରଥମ ସଂସ୍କରଣ ସନ (୧୯୩୮)

# ମୃ
# ତ୍ୟ
# ଚଁ
# ନି
# ଅ
# ଣା
# ଶା
# ତ୍ର

ପ୍ରକାଶକ

ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ର ବି, ଏ

ଗୋପୀନାଥ ପ୍ରେସ—ଭଦ୍ରକ ।

ସ୍ନେହଭାଜନ ଶ୍ରୀମାନ ଗୋପାଳ ପ୍ରସାଦ ଦାସ ବି, ଏ, ଓ ସଙ୍ଗୀତାଚାର୍ଯ୍ୟ ଶ୍ରୀମାନ ମନମୋହନ ଠାକୁର ଏହି ପୁସ୍ତକର ପାଣ୍ଡୁଲିପି ସଂକଳନରେ ସହାୟତା କରିଥିବାରୁ ସେ ଦୁହିଁଙ୍କ ପାଖରେ ମୁଁ କୃତଜ୍ଞ ।

# ସୂଚି



| ବିଷୟ | ପୃଷ୍ଠା |
|---|---|
| ୧ । ମୁକୁଳାଇ ମୋର ସ୍ୱପ୍ନ ଦୁଆର | ୧ |
| ୨ । ବାଜେ ତୋ ରାଗିଣୀ | ୨ |
| ୩ । ଆଜ ମୋ ମାନସ କୁଞ୍ଜେ | ୩ |
| ୪ । କିଏ ସେ ଡାକୁଛି | ୪ |
| ୫ । ଦେଖୁଁ ଦେଖୁଁ ଦେଖି ପାରିଲି ନାହିଁ | ୫ |
| ୬ । ଦୁଆରେ ମୋହର ହାତ ମାରିଗଲା | ୬ |
| ୭ । ରଚିଛି ଏ ମର୍ତ୍ତ୍ୟ ଶଯ୍ୟା | ୭ |
| ୮ । ଦେ ଦେ ତୋର ରୁଦ୍ଧ ଦୁଆର | ୮ |
| ୯ । ସେ ପଥ ଅସିଥିଲ ରାତ ପାହାନ୍ତି | ୯ |
| ୧୦ । (ମୋର) ଶୂନ୍ୟ ଘର ପୂର୍ଣ୍ଣ କର | ୯ |
| ୧୧ । କିରବେ ଗୁହ୍ନିଁ ଗୁହ୍ନିଁ ଯାଉଛ | ୧୦ |
| ୧୨ । ପନ [illegible] | ୧୧ |
| ୧୩ [illegible] | [illegible] |
| [illegible] | ୧୨ |
| ୧୫ । [illegible] | ୧୩ |
| ୧୬ । କୋଡ଼େ [illegible]ରେ ନେଉଛି | ୧୪ |
| ୧୭ । କହନା କହନା ମୋତେ | ୧୪ |

# ବିଷୟ ପୃଷ୍ଠା

ବିଷୟ                                                    ପୃଷ୍ଠା





## ସ୍ମୃତି ତରଣେ ।



କେତେ ଦୀର୍ଘ ଜୀବନର ଅଶ୍ରୁଧାର ଧୂଆ,
କେତେ ତପ୍ତଶ୍ୱାସ, କେତେ ହା-ହୁତାଶ କୁହା,
ସ୍ମୃତିପଟ୍ଟା ଗୀତ ମୋର, ବୁକୁ ରକ୍ତେ ଲେଖା,
ପ୍ରିୟ ମୋର, ସଖା ମୋର, ସାଥୀ ମୋର ଏକା ।
ଗୋଟି ଗୋଟି କରି ତାର ନୀରବ ମୂର୍ଚ୍ଛନା,
ରଖିଛୁ ମୋପାଇଁ ଯହିଁ କେତେ ଅଶ୍ୱାସନା,
କେତେ ଶାନ୍ତି, ତୃପ୍ତି କେତେ, ସୁଖ ଅବସର,
ସେ ତମା ଜୀବନର ଚିର ଅମୃତ ନିର୍ଝର ।



# ଜୀବନ ସଙ୍ଗୀତ ।



( ୧ )

ବେହାଗ-ଏକତାଲି

ଯାକୁ ଲାଗି ମୋର ହୃଦୟ ଦୁଆର
ରୁହଁ ରହିଛି ମୁଁ ତାହାର ଲାଗି ।
'ଏହି ପଥ ସେହି ଆସୁଅଛି' ବୋଲି
ବସିଛି ଧବର ରଜନୀ ଜାଗି ॥ ଘୋ ॥
ମୃଦୁ ପଦ ଧ୍ୱନି ଶୁଣି ଥରେ ଥରେ,
ଚମକି ଚମକି ଉଠେଁ ଚକିତରେ,
ବସି ବସି ବୃଥା ଆକୁଳ ଅନ୍ତରେ
ହେଉଥାଏଁ ଚିର ବେଦନା ଭାଗୀ ॥
( କିନ୍ତୁ ) ଏ ବେଦନା ଦେହେ ରହିଅଛି ପୂରି
କେତେ ଆନନ୍ଦ, ଆଶ୍ୱାସନା;
ସେହି ଆକୁଳତା ଆଣିଦିଏ ପ୍ରାଣେ
କେତେ ଶତହିର ବାସନା ।
ସେହି ମୋହ ମୋର ଚିର ଆକାଂକ୍ଷିତ,
ସେହି ଆଶା ମୋର ଚରମ ବାଞ୍ଛିତ,
ସେହି ଧ୍ୟାନେ ସଦା ରହିଥିବି ରତ
ସଂସାର କରମ ଧରମ ତ୍ୟାଗି ॥



( ୨ )

ଅଶାବରୀ-କାଓ୍ୱାଲି ।

ବାଜେ ତୋ ରାଗିଣୀ!   ମୋ ବୀଣା ତାରେ ।
ନିତି ଦିବସ ନବ—   ନବ ଝଙ୍କାରେ ॥ ଧ୍ରୋ ॥
ମୁଁ ତ ନ ଜାଣଇଁ ବଜାଇ,
ବୀଣାଟିକୁ ଖାଲି ରଖିଛି ଯତନେ ସଜାଇ,
ଥରେ ଥରେ ତାର କୁହୁକ ପରଶ
ଚିତ୍ତ ମୋର ଯାଏ ମଜାଇ ॥
କେବେ ଆସେ 'ମେଘ' ଅନ୍ଧାର ଅମ୍ବର
ଘନ ଘନ ବିଜୁ ଚମକେ ।
ପୁଲକେ ଅନ୍ତର କେବେ 'ବସନ୍ତ'ର
ମୀଡ଼, ମୂର୍ଚ୍ଛନା, ଗମକେ ॥
'ଲଳିତ', 'ଭାମୋଦ୍ଧା', ଆକୁଳେ ଝୁରଇ,
'ଅଶାବରୀ' ଆଶା ମରମେ ମରଇ,
ଉଦାସ ପରାଣ   ଭାସିଯାଏ କେଉଁ-
ଅଜଣା ରାଗର ସାଗର ପାରେ ॥

—:୦:—

( ଶ )

ରାମକେଳି-ଏକତାଳୀ ।

ଆଜି ମୋ ମାନସ କୁଞ୍ଜେ,

ମୃଦୁ ମୁରଲୀ ବଜାଏ କେ ସେ ।

ଜାଗୁଅଛି ଜାଗି କାହାର ମୂରତି

ମୋହନ ମଧୁର ବେଶେ ॥ ଘୋଷା ॥

ଅନ୍ତର ଭିତରେ ମଦିର ମୁରଲୀ

ବାଜଇ ମନ୍ଦେ ମନ୍ଦେ,

ଝଙ୍କାର ଉଠେ ନୂତନ ରାଗିଣୀ

ନୂତନ ନୂତନ ଛନ୍ଦେ ।

ମୁରଲୀର ତାନେ ଆଜି ମୋର ଚିତ୍ତ

ନୂତନ ଆବେଗେ ଜାଗୁଅଛି ମାତି,

ଯାଚି ଦାଜୁଅଛି ମୁଗଧ ପରାଣ

ତାହାର ଚରଣ ଦେଶେ ॥

—x—

( ୪ )

ମୋହ୍ନା-ତେଓଡ଼ା

କିଏ ସେ ଡାକୁଛି ନଈ ସେ ପାରରେ
ରହି ରହି କେତେ ରାଗରେ ।
ହୋ-ହୋ ଡାକ୍ତା ସ୍ୱର- ଶୁଣି ଥିଲି ପରା
କେତେ ଯୁଗ ଯୁଗ ଆଗରେ ॥ ଘୋଷା ॥
କେଉଁ ଜହାଜରେ ଥାଇ ସେ ଡାକୁଛି,
ଶାନ୍ତି-ସ୍ୱର ତାରି ନ ହେଉଛି ଛୁଟି,
କେଉଁ ଗୁହା ଭେଦ ପହଁଚ ଆସୁଛି
କେଉଁ ନିଛାଟିଆ ସାଗରେ ॥
ଲେଳି ଲେଳି କରି ଲହଡ଼ାଇ ଆସେ
ସେହି ଉଦାସିଆ ସ୍ୱରଟି,
କେଉଁ ଗହନରୁ ଶିଶୁଟିଏ ସତେ
ଡାକୁଛି ଦଉଡ଼ି ଦଉଡ଼ି;
ଶିରା ଶିରା ଚିରି ଯାଉ ସେହି ସ୍ୱର,
ଥରାଇ ଦେଉଛି ମରମ ଭିତର,
ଉଡ଼ଳା ପରାଣ ଅଥୟ ହେଉଛି,
ଘର କରିବାକୁ ତା-ଘରେ ॥

—※—

( ୫ )

ମ୍ଳାନ କୋଷ-କଙ୍କାଳ

ଦେଖୁଁ ଦେଖୁଁ ଦେଖି ପାରିଲି ନାହିଁ ତୋ,
ଗବାକ୍ଷ ଫାଙ୍କେ ଉଣ୍ଡି ଗଲାଟି କେ ସେ ।
ଚମକିତ ମୁହଁ ଦେଇ ଉଭାଇ ଗଲା ସେଥୁ

ଯାଉଛି ପର କାହିଁ ସପନ ଦେଶେ ॥ ଘୋଷା ॥
କେ ଜାଣି କାହିଁକି ଯେ ଭ୍ରମି ଗଲା ବୁଦ୍ଧି,
ସରମେ ଅଖି ଯୋଡ଼ା ପଡ଼ିଲା ଆପେ ମୁଦି,
କହିତ ଗଲା ନାହିଁ,
ଗୋପନେ କାହିଁ ପାଇଁ
ଥିଲ ସେ ଅସି କାହିଁ, ଯାମିନୀ ଶେଷେ ॥
ପବରେ ଥିଲା ପଦ ଲାଗୁଛି ଥରେ ଥରେ,
ପାଟେଣୀର ଗୀତ ଜାଗି ଉଠୁଛି କ୍ଷୀଣ ସ୍ୱରେ
ପଡୁତ ନାହିଁ ଜଣା,
ପୁଲକ କି ବେଦନା
ବାଜଇ ତାଳେ ତାଳେ ଅନ୍ତର ଦେଶେ ॥

—୪୦୫—

[ ୫ ]

( ୬ )

## ଭୈରବୀ-ଏକତାଳ

ଦୁଆରେ ମୋହର ହାତ ମାରଗଲ କେ ।
କବାଟ ଫେଇ ମୁଁ ଚାହିଁ ଦେଲି, ନାହିଁ ସେ ॥ ଘୋ ॥
ଯେ ହୋଇଥା ତୁ, ଆସିଥିଲୁ କେଉଁ ଆଶେ ?
କି ପାଇଛି ତୋର ଥିଲା ମୋହ ପାଶେ ?
ଦଣ୍ଡେ ରହିଯା ମୁଁ ସଜ ହୋଇ ଆସେଁ
ମୋତେ ସାଙ୍ଗ କରି ନେ ॥
ଆସିଲୁ ଯେବେ ଫେରି ଗଲୁ ବା କାହିଁକି !
ମୁଁ ଯାଉଁ ଯାଉଁ ଡେରି ସହିଲା ନାହିଁକି ?
ଯାଇ ନ ଥିବୁ ପରା ତୁ କେବେ ବେଶି ଦୂର,
ହେଉଛି ଶୁଭୁଛି ତ ତୋହର ବଂଶୀ ସ୍ୱର;
ସେ ସ୍ୱର-କୁହୁକରେ ମଜ୍ଜା ପରାଣ ମୋର
ବାଇ-ବଳୁ କରି ଦେ ॥



( ୨ )

ଖାମ୍ବାଜ-ଏକତାଲ

ରଚିଛ ଏ ମଧୁ ଶଯ୍ୟା,—ଚିର ବାଞ୍ଛିତ ଅହେ ବାଞ୍ଛିତ !

ସାରା ଜୀବନର ଆଶା, ଆକୁଳତା,

ଭରି ସଯତନେ ସଞ୍ଚି ॥ ଘୋଷା ॥

ଉଠିଲା ଚନ୍ଦ୍ର କିରଣେ,
ବାତୁଳ ପବନ ଆକୁଳେ ଧାଇଁଛି
ଚୁମନ୍ତି ରାତୁଲ ଚରଣେ;
ଏ ମଧୁ ଯାମିନୀ ହେବନି ହେ ଭବ
ମଧୁର ପରଶ ବଞ୍ଚିତ !—
ବାଜନେ କୁସୁମ ଶୟନେ,
ଅଧରେ ଅଧର ହୃଦୟେ ହୃଦୟ
ନୟନ ଅରପି ନୟନେ;
କେତେ ଜନମର ଅକୁହା କାହାଣୀ
ଗୋପନେ କହିବ କିଞ୍ଚିତ ॥

—*—

( ୮ )

ଶଙ୍କରା-ଏକତାଳି ।

ଖୋ' ଦେ' ତୋର ଦୁଃଖ ଦୁଆର ଫେଇ ଗୋ ।
ନିମେଷକ ଲାଗି ଅଟକୁ ମୁଁ, ଖାଲି
ବାରତାଟି ଶିବ ଦେଇ ଗୋ ॥ ଘୋଷା ॥

ଡର ନାହିଁ ମୋତେ, ନୁହେଁ ମୁଁ କୁଣିଆ,
ଘର ମୋ ପଡ଼ିଛି ସାରଥି ଦୁନିଆ
ଲୁଣ୍ଠାଇ ଲୁଣ୍ଠାଇ ପର ବୋଝ ଯାକ,
ମୁଣ୍ଡାଇ ବୁଲୁଛି ନେଇ ଗୋ ॥

ମିଛେ ତୁ ବଳାଉ ଅଳ କାହିଁପାଇଁ,
ଦଣ୍ଡେ ବସିବାକୁ ମୋତେ ତର ନାହିଁ,
ବେଳ ହେଲେ ମୁଁ ଯେ ସ୍ୱରେଇ ପଶିବି
ଜଳେ ବଳେ ତୋହ ଠାଇଁ ଗୋ ॥

—:o:—

[ ୮ ]

( ୯ )

ଜୋଗିୟା-କୱାଲି

ସେ ପରା ଆସିଥିଲେ ରାତି ପାହାନ୍ତି ।
ତା ଲାଗି ଶୋଇଥିଲି ହୋଇ ଗୃହାନ୍ତେ ॥ ଘୋଷା ॥
ମନକଥା ରହିଗଲା ମନେ,
ସପନ ମିଳାଇ ଗଲା ସପନ ସନେ,
ଆଜି ପୁବର ଥରେ ଦେଖି ଥାଆନ୍ତି ॥
ଅସରା ପୂଜା ରହି ଗଲା ବାକି,
ଡାଲାରେ ଫୁଲ ଟିକି ଯାଉଛି ଲିଭି,
(ମୁଁ) ରଖିଛି ବାସି ଫୁଲଡାଲ ସାଆନ୍ତ ॥

— * —

( ୧୦ )

ବସନ୍ତ ବାହାର-ଏକତାଳ ।

(ମୋର) ଶୂନ୍ୟଘର ପୂର୍ଣ୍ଣ କର ଆସ ହେ ଆସ ।
ମୋର ବିଫଳ ଜନ୍ମ ଧନ୍ୟ କର ଆସ ହେ ଆସ ॥ଘୋ॥
ଭଙ୍ଗା ଆଶାଲତି ଧର,
ବାନ୍ଧୁଛି ଏ ଜୀର୍ଣ୍ଣ ତରୀ,
(ମୋର) ସକଳ ଦୈନ୍ୟ ଚୂର୍ଣ୍ଣ କର ଆସ ହେ ଆସ ॥
ଏକାକିନୀ ଅନ୍ଧକାରେ,
ରହିଅଛି ଲୁଚି ଦ୍ୱାରେ,
(ମୋର) ସବୁ ବନ୍ଧନ ଛିନ୍ନ କର ଆସ ହେ ଆସ ॥

—:o:—

( ୧୧ )

ସୋହିନୀ-ଭୈରବୀ

ନୀରବେ ଚାହିଁ ଚାହିଁ    ଯାଉଛି ସେ ଫେରି
ହତାଶେ ।
ମନାଇ କହୁ ନାହିଁ    ମନ ଘେନା ପଦେ
କଥା ସେ ॥ ଘୋଷା ॥

ଥିଲି ମୁଁ ତାହା ଲାଗି,
ସାରା ରଜନୀ ଜାଗି
ଅତୁଳ ଉଲ୍ଲାସର ସ୍ୱପନେ;
କାହିଁକି ନିଶି ଶେଷେ
ନ ଜାଣି କି ଅବେଶେ
ଆସିଲା ନିଦ ମାଡ଼ି ନୟନେ ॥
ମୋ ଶେଯ ତଳେ ତାର ବେଦନାଟିକି ଥୋଇ,
ଲେଉଟି ଗଲା ସେ ସେ କି ମନେ ଭୁଲି ହୋଇ,
ଭରି ରହିଛି ତାର    ଶ୍ୱାସଟି, ନର୍ତ୍ତିଣିଆ-
ବତାସେ ।

—୪୦୪—

( ୧୨ ),

ବାଗେଶ୍ରୀ-ଆଠତାଳି

ମନ ଆଶା ମେଣ୍ଟି ନାହିଁ ଏତେ ମର କର କି ।
ନେତ୍ରରୁ ଓଟାର ପୁଣି କେଶ ଧର ଧର କି ॥ ଘୋ ॥
ତୋତେ ତ ଲାଗିଛି ଖେଳ, ବୁଝୁଛି ମୋର ହେକାଳ,
ରହିଥିବ କେତେ କାଳ ଆଉ ଏହି ଘର କି ।
ପର ହେଲେ ଘରବର, କି ଲଗା ତହିଁକି ତୋର,
ମିଳିବ ଗଲାଣି ମୋର ବର, ଅନୁସରି କି ॥

—✢—

( ୧୩ )

ହାମ୍ବିର-କବାଲି

ଆଖିରେ ଦେଖା ତୁକି ନ ହେଲୁ ଥରେ ।
ଦିବା ରଜନୀ ମୁହିଁ, ଚକିତେ ଚାହିଁ ଚାହିଁ,
ନୀରବେ ନୟନରୁ ନୀର ନ ସରେ ॥ ଘୋ ॥
କିରୂପେ ଅଛୁ କାହିଁ, କି ଭାବେ ରହିଥାଉ,
କାହିଁ ଉଭାଇ ଯାଉ, ଚକିତେ ଚାହିଁ ଚାହିଁ,
ନାହିଁ ନ ଥିବା ଭଲ, ଏ ଅତି କଲବଲ,
ମରମ ବ୍ୟଥା କେତେ ମରମେ ମରେ ।
ଅଫୁଟା ଫୁଲ କେତେ ମୁକୁଳେ ଝଡ଼େ ॥

( ୧୪ )

ଖାମ୍ବାଜ-ଢେଉଁଟ

ତା ରୂପ ଦେଖି ନାହିଁ ନୟନେ, ତାକୁ
ଅନୁଭବେ ଜାଣି ପାରୁଛି ।
ଜାଣିଲା ଦିନରୁ ଏ ଜୀବନ ମୋର
ତା ପଦେ ସମର୍ପି ଦେଇ ସାରୁଛି ॥ ଘୋଷା ॥
ସେତ ଆସେ ନାହିଁ ଦିବସ ଆଲୋକେ,
ସେ ଆସେ ଗୋପନେ ସ୍ୱପନ ପୁଲକେ,
ତା ଭାବ, ତା ସ୍ନେହ, ତା ମାଧୁରୀ, ମୋହ,
ମନ ପ୍ରାଣ ମୋର ହରୁଛି ॥
କହେ ତା କଥା ସୁମଧୁର ସ୍ୱର,
ମରମେ ମରମେ ଗଭୀର ମୁଁ ମର,
ନ ଭୁଲି ନ ବୁଝି, ଦେଇ ଆଖି ବୁଜି,
ତା ପାଖରେ ମୁଁ ଚାଲି ଯାଉଛି ॥



[ ୧୨ ]

( ୧୫ )

ଜୟ ଜୟନ୍ତୀ-ଏକତାଳ ବା ଚୌତାଳ ।

ତୁ ମୋତେ ଗୁହୁଁନା ଭୁଲ ଧନେ ହେଲେ
ମୁଁ ତୋତେ ଅକୁଳେ ଗୁହୁଁଛୁ ।
ତୁ ମୋତେ ଲୋଡୁନା, ନିତିଦିନ ମୁଁ ଯେ
ପାଖେ ପାଖେ ତୋର ରହୁଛୁ ॥ ଘୋଷା ॥

ଅଜାଣ୍ଟାରେ ତୁହ କୁଦ ଚୁଲୁଥାଉ,
ଅତଳ୍ୟନ୍ତ ପନ୍ଥେ ହସ ଡେଣିଲା ଯାଉ;
ତୋର ଦୁଃଖ, ଦାଗ, ଅଣ୍ଡାବ ଯେତେକ
ନିଜ ଶିରେ ମୁହିଁ ବହୁଛୁ ॥

ଯେ ଭଳି ତୋହର ଅଳି, ଅରଦଳି,
ନାହିଁ ମୋର କାଛୁ ସୁଖ ତହୁଁ ବଳି,
ତୋର ଯେତେ ଗୋଳ, ଯେତେକ ଜଞ୍ଜାଳ,
ଛୁତ ପାତ ସବୁ ସହୁଛୁ ॥

— ❋ —

( ୧୬ )

ଭୈରବୀ-ଏକତାଲ ।

କେଉଁ ଝଞ୍ଜରେ ନେଉଛୁ ହିଙ୍କି
କଏସେ ମୋତେ କାହିଁ ।
ଝିଙ୍କା ଗାର ମୁଁ ପାରୁନାହିଁ ଜାଣି
(ମୋତେ) ଅଖିରେତ ଦଶୁନାହିଁ ॥ ଘୋ ॥

କେବେ ଉପରକୁ ଚଢ଼ାଇ ନିଏ
କେବେ ଭୂଇଁରେ ଗଡାଇ ଦିଏ,
କେବେ ଗୁଲୁଥାଏ ଧୀର ପାଦରେ
କେବେ ଯାଉଥାଏ ଧାଇଁ ॥

ସବୁବେଳେ ସେ ମୋର-ଧରଛି ହାତେ,
ଅଛି ମୋର ସାଥେ ସାଥେ,
(ତେବେ) ଧରି ନ ପାରି ମୁଁ ଧାଇଁ ଦୂରଅନ୍ତ
ତାକୁ ଖୋଜି ବୁଲୁଥାଇଁ ॥

କାହିଁକି ନେଉଛୁ, କୁଆଡେ ନେଉଛୁ,
ଜଣା ନାହିଁ ମୋତେ କିଛି,
କେ ଜାଣି କେ କିସ ମନ୍ତ୍ର କଲଣି
ବାଇ ହେଲି ତାହା ପାଇଁ ॥

—×—

( ୧୨ )

## ଫିଲ୍-କାର୍ଡୱାଲ୍

କହନା କହନା ମୋତେ ତା’କଥା ଆଜ୍ ।
ତା’ଲାଗି ଏ ଜୀବ ପଛେ ଯିବ ତ ଯାଉ୍ ॥ ଘୋ ॥

କହ ଆଜ୍ କେଉଁ ଅପେଶ,
ଯିବ ଗୋ, ତାହାର ପାଶେ,

ସାଧୁଛି ମୋ ହାର ପରେ ସେ ତାର ଦାଉ୍ ।
ତା’ଲାଗି ଏ ଜୀବ ପଛେ ଯିବତ ଯାଉ୍ ॥

ଡ଼ାକିଲେ ବୃନ୍ଦା ଯଦି ପରାଣ ବ୍ୟଥା,
ତାହାର ଚରଣେ କୋଉ ଦୁଅନ୍ତ ମଥା;
ଡ଼ାକିବା ନାହିଁତ ବାକି,
ଥକାଲିଣି ଡାକି ଡ଼ାକି;
ଯେତକ ହେଲାଣି ଏବେ ତେତକ ଥାଉ୍ ।
ତା’ଲାଗି ଏ ଜୀବ ପଛେ ଯିବ ତ ଯାଉ୍ ॥

— ※ —

( ୧୮ )

ପୂରବୀ-ଏକତାଳ

ଅଭ୍ର ଭାବନା କାହିଁକି !
ଯାହାତ ହେବାର ତାହା ହେଲାଣି ନାହିଁକି ॥ ଘୋ ॥
ସରିଲାଣି ଲୀଳା ଖେଳା, ବୁଡ଼ିତ ଗଲାଣି ବେଳା,
ହେଲା ମୁଁ କରିବ ଆଉ କି ସୁଖ ପାଇଁକି ॥
ଭାଙ୍ଗିଲାଣି ସବୁ ଆଶା ସବୁ ମନ ଫୁଲାଣି
ସବୁ ମନ କଥା ଯାଙ୍କ ମନେ ମନେ ମଲାଣି;
ସବୁତ ଗଲାଣି ସରି ଭଙ୍ଗା ନାହାଟିକୁ ଧରି,
(ମୁଁ)ସଜ ହୋଇ ବସିଛୁ ସେ ଦିନକୁ ଚାହିଁକି ॥



( ୧୯ ).

ଦେଶ-ପଞ୍ଚମସଓ୍ୱାରୀ ।

ସେତ ନୁହେଁ ନୂଆ ଗୋ ସେ ନୁହେଁ ନୂଆ ।
(ସେ ମୋ) ଜୀବନ ଦେବତା ରୂପେ ହୃଦଯେ ଥୁଆ ।
ଜନମ ଜନମ ଭରି ଗୋପନେ ରଖିଛୁ ଧରି;
ମରମେ ମରମେ ଗୁନ୍ଥି ରଖିଛୁ ହାର,
ସେ ସୁତରେ ନେଇଛୁ ବାନ୍ଧି ଅନ୍ତର-ତାର;
କେତେ ସୁଖ କେତେ ଆଶା, କେତେ ବା ନୀରବ ଭାଷା,
କେତେ ଅଶ୍ରୁ ମାଖିତ ତାର ମୁରତି ଧୂଆ ।



( ୨୦ )

ଖାମ୍ବାଜ-ଏକତାଲ ।

ଚିର ସୁନ୍ଦର ଅହେ ସୁନ୍ଦର ।
ନିତ୍ୟ ନୂତନ          ପ୍ରେମ ନିକେତନ
ଆନନ୍ଦ-ଘନ କଳେବର ॥
ନିଶି ଦିନ ତବ ପୂତ ପରଶ,
ଆଣିଦିଏ ପ୍ରାଣେ ନବୀନ ହରଷ,
ସଙ୍ଗୀତ ତବ          ଢାଳିଦିଏ ପ୍ରାଣେ
ଅମିୟ ମାଧୁରୀ ନିରନ୍ତର ।
କେବେ ବା ବାହାରେ          କେବେ ଅନ୍ତରେ,
କେବେ ଦୂରେ, କେବେ ନିକଟେ ;
କେବେ ଜଳେ ସ୍ଥଳେ,          ଗଗନ ମଣ୍ଡଳେ,
ତବ ରୂପ ଛବି ପ୍ରକଟେ;
(ଅହେ) ସ୍ନିଗ୍ଧ, ସୁନ୍ଦର, ଶାନ୍ତ,
ମୋହନ, ମଧୁର, କାନ୍ତ,
ପ୍ରାଣେ ପ୍ରାଣେ ମୋର          ସେ ଲାବଣ୍ୟ ରାଶି
ଭାସି ଆସେ ସଦା ଚରାଚର ।



( ୨୧ )

ଭଲକ କାମୋଦ-ଝାମ୍ପତାଳ ।

ବାଧା ହେଲାଣି ଗୋ, ବଡ଼ ବାଧା ହେଲାଣି ।

(ତୋ) ଘର-କରଣାରେ ମନ ମରି ଗଲାଣି । ଘୋ ॥

ଯେ ତୋତେ ଭରସା କରେ,

ହଟହଟାରେ ସେ ମରେ,

ଜାଣିଲି ତୋ କଥା ଖାଲି ମନ ଭୁଲାଣି ।

ମୋ ଅଟେ ଗୃହର ଅଉ କହନା ଗୋ କହନା,

ଗଲା ନାହିଁ ଏବେ କି ତୋ କଥା ମନମୋହନା !

ଯାହା ତ ହେବାର ହେଲା,

ଶରଧା ଟା ଜଣା ଗଲା,

ନେହୁରି ହେଉଛୁ ଭଲା, ଧାଅ ମେଲାଣି ।

( ୨୨ )

ରାମକେଲି-ଧାମାର ।

ସବୁ ସୁଖ ଯେବେ ସରିଲାଣି, ଏବେ
ନିଜ ରାହା ଧର ରେ ।
ସବୁ ଆଶା ଯେବେ ତୁଟିଲାଣି, ତେବେ
ଅଜ୍ କିସ ଡ଼ର ରେ । ଧୋ ।
ସାରଥି ଜୀବନ ସାଧି, ସାଧି, ସାଧି,
ସବୁ ବାସନାର ବିରତ ସମାଧି,
ସବୁ କର୍ମ ଯେବେ ହୋଇଲାଣି ଶେଷ
ପୋଡିଲାଣି ଘର ରେ ।
ଲିଭିଲାଣି ଯେବେ ଉଜ୍ଜଳ ନୟନେ,
ଅଲୋକରେ ଶେଷ ରେଖାଟି,
ନିଭିଲାଣି ଯେବେ ହୃଦୟ କୁଟୀରେ
ଆଶାର ପ୍ରଦୀପ ଶିଖାଟି,
ଆଜ୍ କାହା ଲାଗି ରହିଅଛୁ ଠାକି,
ଆଉ ତୋର ଅବା କିସ ଅଛୁ ବାକି,
ଅସିଲାଣି ତେଣୁ ଆଦର ଡକରା
(ଶୁଭ) ଅନୁକୂଳ କର ରେ ।



( ୨୩ )

କୀର୍ତ୍ତନ-ଏକତାଲ

କେତେ ଯତନରେ, ସଜାଇଥିଲି ମୁଁ
ଘର ମୋର ଭାଙ୍ଗି ଗଲାଣି ।
ମୋର ମୋର ବୋଲି ଯାକୁ ବୋଲୁଥିଲି
(ଏବେ) ଯା ହେବାର ତାହା ହେଲାଣି ॥ ଘୋଷା ॥
(ସବୁ ତ ମୋର ଯାଇ ଗଲାଣି)
(ଧନ, ଜନ, ଆଶା, ଭରସା )
ଧନ ନାହିଁ, ଅଛି କାମ, କ୍ରୋଧ, ଲୋଭ,
ଜନ ନାହିଁ, ଅଛି ମାୟା, ମୋହ, କ୍ଷୋଭ,
ପଦ ନାହିଁ, ବୃଥା ମଦର ଗରବ,
ମନକୁ ମତାଇ ଦେଲାଣି ॥
(ଧରି ମନେଣି ସବୁ ପର)
(ଆଘଣା ଗରବେ ଫୁଲି ମର)
ସବୁ ଯାଇ ଏକା ନୟନର ଜଳ,
ହୋଇଛି ଏବେ ମୋ ଜୀବନ ସମ୍ବଳ,
ସେତିକ ଢାଳି ଦେଇ ଚରଣେ
ସେବାକୁ ବସିଛି ମେଲାଣି ॥
( ନାହିଁତ କିଛି ଅନ୍ୟ ଆଉ )
(ତୋହର ଦାନ ତୋ ଠେଇଁ ଥାଉ)



( ୨୪ )

କାନଡା ମିଶ୍ର-ଝେମଟା

ଭଙ୍ଗା ମୋର ଡଙ୍ଗା ଖଣ୍ଡିକ ଯାଉଛି ଭାସି ।

କେଉଁ ଅଜଣା ସ୍ୱପନର କୂଳ ମନାସି ॥ ଘୋ ॥

ରତ ରତ ହେଉଛି ବେଳ,

ଦିଶଅରେ ନଦୀ ସେ କୂଳ,

ମିଶିଯିବ କ୍ଷଣି ଅନ୍ଧାରେ ମନ ଉଦାସୀ ॥

ଅସ୍ତରବି ଢେଉଙ୍କୁ ଢେଉ, ଅଟୁଛି ମାଡ଼,

ଦଦରା ଏ ନାଅ ଖଣ୍ଡିକ ଯିବକି ବୁଡ଼;

କେହି ସାହା ହୁଅନ୍ତେ ନାହିଁ,

ଏକୁଟିଆ ଯାଉଛି ବାହି,

ତାରାଟିଏ ଆକାଶ କୋଣେ ଚାହିଁଛି ଆସି ॥



( ୨୫ )

ଲଳିତ-ଏକତାଲି

ଘୁମୁର ଘୁମୁର ବୁଲୁଛୁ କାହିଁକି
ଅଉରେ ବାଇୟା ସୁରତି ।
ଭାଙ୍ଗି ଦେଲଣିତ ବୀଣାଟିକୁ ମୋର
ଛୁଣ୍ଡାଇ ଦେଲଣି ତାରଟି ॥
ପାହାନ୍ତିଆ ଶୁଭ ଲଗନେ,
କଜଳପାତର ଛାତ ଫଟା ଗୀତ ମାତଛୁ 'ଗଗନେ ଗଗନେ,
ଉଡନ୍ତା'ଏବେରେ ପାଗଲ ସୁର ତୁ କାକର ପଖାଳା ପବନେ,
ମେଘ ଆର ପଟେ ଝୁଟ ଝୁଟ ପରୀ
ଧଣି ଯାଉଛୁ ତୋ ପୁରତି ॥
ଚଉଦ ଫାଙ୍କରେ ଛୁଉକି ପଡୁଛୁ
ଗୁଣ୍ଡି ଗୁଣ୍ଡି ହୋଇ ସିନ୍ଦୁର ।
ପାଉଁସିଆ ରଙ୍ଗ ପଡ ଆସିଲାଣି
ଚନ୍ଦ୍ରର ମୁହଁଟି ଇନ୍ଦୁର ॥
ମୋ ପାଇଁ ଯେତେ ସରିଲାଣି ଏଠେ
ତୋର ମୋର ଆଜ ଶେଷ ଭେଟା-ଭେଟି,
ଏକୁଟିଆ ଏବେ ସଙ୍ଗ ହୋ'ଇଛୁ ମୁଁ
ମିଛା ପାଇଁ ବନ୍ଧୁ ଦୂରଟି ॥



( ୨୭ )

ବୃନ୍ଦାବନୀସାରଙ୍ଗ-କାଓ୍ୱାଲି ।

ଅନ୍ତର ଉତ୍ସବ ଆଜି ହୃଦୟରେ ।

ବିଗତ ଜ୍ୟୋତ୍ସ୍ନା ମମ ବିଗତ ବିଗତରେ ॥

ମତ୍ତ ବିଳାସ ବିଲୋଳିତ ପ୍ରାଣ,

ମଗ୍ନ ଧିଆନେ ଶାନ୍ତି ଶୟାନ,

ଲୁଣ୍ଠିତ ପୁଷ୍ପ କୁସୁମ ଶତ ଶତରେ ॥

ପୁଲକିତ ଆଲୋକ ଉଲସିତ ଗଗନେ,

ଅନ୍ଧକାର ରାଣି ହାସିଛି ସଘନେ

| | |
|---|---|
| ରାଗିଣୀ ନବ ନବ, | ମୁଖର ମୁରଜ ରବ |
| ଅବସାନ ଅଙ୍ଗ ମମ | ଉନମତ୍ତ ତାଣ୍ଡବ, |

ନୀରବ ବୀଣାତାରେ ବାଜିଣି 'ବିରତରେ ॥



( ୧୭ )

ଦରବାରୀ କାନଡ଼ା-କାଓ୍ୱାଲି

ମୂରଚ୍ଛିତ ଅମ୍ବର ବାହୁ ।

ଭାସିଆସେ କି ଗମ୍ଭୀର, ମୂର୍ତ୍ତ ସଙ୍ଗୀତ

ଘନ ନୀରବତା ଅବଗାହୁ ॥

ସୁପ୍ତ ଦିଗନ୍ତ, ନିଦ୍ରିତ ଧରଣୀ

ଶାନ୍ତ, ସୁଷୁପ୍ତ, ନିରଜନ ସରଣି,

ପ୍ରଗାଢ଼ ରଜନୀ--

ଉଠରେ ! ଅସୀମ ପଥ ଯାତ୍ରୀ,

ନୀରବ ଉଦ୍ଦିପ୍ତା-ହିନ୍ଦୁ-ଝଳକେ

ଦେ ତୋର ତରଣୀ ଭସାଇ ॥



( ୧୮ )

ବସନ୍ତ-ଏକତାଲ

ଆସ ପ୍ରିୟତମ ମରଣ, ମୋହର
ମୋହ ବନ୍ଧନ ଛୁଟାଇ ।
ଆସ ଆସ ମୋର ଅନ୍ଧ ନୟନେ
ନୂତନ ଜଗତ ଫୁଟାଇ ॥
ବିପଦରେ ତୁହି ଏକା ଚିର ମିତ,
ତୋ ବିନୁ ଜୀବନେ ନାହିଁ ମୋ କେହିତ
ଆସ ବନ୍ଧୁ ମୋର ବ୍ୟଥିତ ପରାଣୁ
ସକଳ ବେଦନା ଛୁଟାଇ ।
ଦେନି ଆସ ସାଥେ ଅପାର ଆନନ୍ଦ
ଅସୀମ ଅସରା ମୁକ୍ତି,
ପୂର୍ଣ୍ଣ ପିୟୂଷ-ଶାନ୍ତି ନିରାଞ୍ଜ
ଢାଳି ଅସରନ୍ତି ତୃପ୍ତି ;
ଜର ଜର ମୋର କାତର ଅନ୍ତରେ,
ସୁନା-କାଠି ଛୁଇଁ ଦେଇଯାଅ ଥରେ,
ନବୀନ ଜୀବନେ ନବ ବସନ୍ତର
ନବ ସଙ୍ଗୀତ ଉଠାଇ ॥



( ୧୯ )

ଗୌରୀ-ଏକତାଲ

ମଉଳାଉଛୁ ଯେବେ ଫୁଲଟି, କାହିଁକି
ବାସ ତାର ଉଠେ ମହକି ?
ନିଭୁଛି ଅନଳ ଶିଖା ଯେବେ, କହିଁ।
ଧାସ ତାର ଉଠେ ମହକି ?
ସୂରଯ ଦେବତା ପରବତ ପାରେ,
ବୁଡ଼ିଲେଣି ଯେବେ ସଞ୍ଜ୍ୟା ଅନ୍ଧାରେ,
ପଶ୍ଚିମ ଆକାଶେ ଇନ୍ଦ୍ର ତେବେ, କାହିଁ
ନାଲି ରଙ୍ଗ ଉଠେ ଝହକି ?
ବସନ୍ତ ଗଲଣି, ଅଜରେ କାହିଁକି
ବହୁଛି ଦକ୍ଷିଣା ବତାସ,
ବୁକୁ ପୋଡ଼ଲଣି, ତୁଚ୍ଛାଟରେ କାହିଁ
ରହୁଛି ରେ ହା'—ହୁତାଶ;
ଭାଙ୍ଗିଲାଣି ବୀଣା, ଛିଣ୍ଡିଲାଣି ତାର,
ଦୂମୁରୁଛି କାହିଁ ମନ୍ଦ-ସ୍ୱର ତା'ର,
ଝଡ଼ିଲାଣି ଫୁଲ, ଅଜ କାହିଁପାଇଁ
ଡାଳଟା ପଡ଼ୁଛି ନହକି?
ଭାଙ୍ଗିଲାଣି ଯେବେ ହାଟଟା, କାହିଁକି
ଅଜରେ ରହୁଛି ଗହଳୀ ?



( ୬୦ )

ଝିଞ୍ଜିଟ—ଏକତାଳ

ଅଜ ମୋ ଜୀବନ କର୍ମ ଶେଷେ
ଜୀବନ ସ୍ୱାମୀ ଆସହେ ଚାରେ ।
(ମୋର) ଅନ୍ତିମ ସମୟେ, ହେ ଅନ୍ତରଯାମୀ,
ଉଭାହୁଅ ଆସି ଅନ୍ତର ଦ୍ୱାରେ ॥ ଘୋଷା ॥
ତୁମର ସ୍ଥିର ଆଗମନ ପାଇଁ,
ଅଧୀର ନୟନେ ଅଛୁ ପଥ ଚାହିଁ,
(ମୋର) ସକଳ ଆନନ୍ଦ, ସକଳ ବେଦନା
ସଙ୍ଗି ଦେବ ବୋଲି ତୁମର ପାଖରେ ॥
ଆସହେ ସୁନ୍ଦର, ଆସହେ ମଧୁର
ମୋ ହୃଦ ଆକାଶ ଲିକା-ଶିଖରେ,
(ପିଇ) ତୁମର ଚରଣ-କିରଣ ପରଶେ,
ହରଷେ ମରଣ-ସିନ୍ଧୁ ପାରେ ॥



( ୩୧ )

ଖାମ୍ବାଜ-କାର୍ଫା

ଶବଦେ, ପରଶେ ଅସ୍ତୁ    ରୂପ, ରସ, ଗନ୍ଧେ,
ନାଚ ନାଚ ନବ ନବ ଛନ୍ଦେ ।
ନବୀନ ତାନ, ଲୟେ    ଝଙ୍କାର ମୂର୍ଚ୍ଛନା,
ଜୀବନ ମୁରଲୀ ରବେ ଭାସି ମୃଦୁ ମନ୍ଦେ ॥ ଘୋଷା ॥
ସକଳ ଅଶ୍ରୁ ମୋର, ଧରେ ତବ ଯୌବନ,
ସକଳ ହାସ୍ୟ ମୋର ଝରେ ତବ ସଙ୍ଗୀତେ,
ସକଳ କର୍ମେ ପୂର୍ଣ୍ଣ,    ସକଳ ଚିନ୍ତାରେ
ରହିଛୁ ସକଳ ଦୁଃଖେ, ସକଳ ଆନନ୍ଦେ ॥

( ୩୨ )

କେଦାର-କାୱାଲି

(ଆସ) ମାନସ ମୋହନ ଆସ ଆସ ।
(ଆସ) ଚିର ଆରାଧନ ଧନ ଆସ ।
(ଆସ) କୁସୁମ ସୁରଭି ଦୋଳେ ଆସ,
(ଆସ) ମଳୟ ଦୋଳାରେ ଦୋଳି ଆସ,
(ଆସ) ଚନ୍ଦ୍ର କିରଣେ ଚଳି ଆସ;
ମୃଦୁ ମୁରଲୀ ଗୀତେ    ବସନ୍ତର ମୂର୍ଚ୍ଛନା
ଡାକେ ଡାକେ ଚଳି ଚଳି ଆସ ॥

— ✱ —

( ୩୩ )

ଗ.ଉମିଶ୍ର ଏକତାଲି

ନିଖିଳ ବିଶ୍ୱ ନନ୍ଦିତ କରି ଜାଗୁଛି ମଧୁର ଛନ୍ଦ ।
ଗଗନ ଭୁବନ ସ୍ପନ୍ଦିତ କରି ବହୁଛି ମଳୟ ମନ୍ଦ ॥
ମେଘ କୋଳେ ବସି ମୋହନିଆ ଶଶୀ,
ଉଠୁଛି ଉଲ୍ଲସି ହସି ହସି ହସି,
ତା ଅଙ୍ଗରୁ ଝରି ପଡୁଛି ସରାଗେ, ବିନ୍ଦୁ ବିନ୍ଦୁ ମକରନ୍ଦ ॥
ଏ ମଧୁ ନିଶୀଥେ ଆସ ବନ୍ଧୁ ଆଜି,
ମିଳନ ବାଂଶରୀ ଉଠିଲାଣି ବାଜି,
ଅକୁଳ ଲାଳସି ଭୂଷିତ ପରାଣ ବାତୁଳ ବାକୁଳ ଛନ୍ଦେ ॥

—•—

( ୩୪ )

ବଲ୍ଲଓଲ୍ — ଏକତାଲି ।

ମୋର ଶୂନ୍ୟ କୁଟିର ଦ୍ୱାରେ ।
ନୂତନ ଅତିଥି ଆସିଛି ଆଜି ଗୋପନ ଅଭିସାରେ ॥ ଘୋ ॥
ବ୍ୟଥିତ ପରାଣେ ଘାର୍ଦ୍ଧି ବିରହ କରି ବନ୍ଧୁ ଅତନ୍ଦ୍ର,
କେତେ ଦୂର ଦେଶୁଁ ଆସିଛି ସେ ଘର୍ମି ହୋଇ ଅତି ପଥ ଶ୍ରାନ୍ତ ।
ନୟନ ସଲିଳେ ଚରଣ ପଖାଳି,
ହିକୁଟରେ ପ୍ରେମ ଛୁର ହୋଇ ନିଉଛାଳି,
ଅଞ୍ଜଳି ବସାଇ, ପୂଜିବ ଯତନେ ବେଦନା-କୁସୁମ ହାରେ ।

—○—

( ୩୬ )

କୀର୍ତ୍ତନ—ଏକତାଲି

କେଉଁ ଜନମର ବନ୍ଧୁ ସେ ମୋର, କେଉଁ ଜନମର ବନ୍ଧୁ
(ମୋର) ଅନ୍ଧକାର ହୃଦୟଗଗନେ ସ୍ନିଗ୍ଧ ଶରଦ ଇନ୍ଦୁ ।
ଏଯେ ( ଚିରବଦନର ସ୍ମିତ ) (ସେ ମୋହର ମୁଁ ତାହାର)
( ଜୀବନେ ମରଣେ ବନ୍ଧା ବନ୍ଧି )
( ପଶ୍ଚଣେ ପଶ୍ଚଣେ ଛନ୍ଦାଛନ୍ଦି )
ଏକୁଟିଆ ମୋତେ କେଉଁଠି ମୁଲୁଛ,
କେଉଁ ଗହନରେ ରହିଥିଲ ଲୁଚି ,
ଏତେଦିନେ ଏବେ ଉଦୟ ହୋଇଛ, ଉଚ୍ଛୁଳାଇଚାଉ ସିନ୍ଧୁ
(ସେ ଯେ ଅନେକ ଦିନର ଚିହ୍ନା )
( ସ୍ମୃତିପଞ୍ଜା ତା ମୁହିଁଟି )
(ଚିହ୍ନେ ଚିହ୍ନେ ବୋଲି; ଚିହ୍ନି ହେଉନାହିଁ )
କେତେ କାଳ ତାର ସ୍ମୃତିଟିକୁ ଧରି,
ରହିଅଛି ମୁହିଁ କେତେ ଆଶା କରି,
ଦିନ ନ ସରୁଛି ତାକଥା ସ୍ମରି, ଦିନ ରାତି କାନ୍ଦୁ କାନ୍ଦୁ
( ନ ହୁଏ ପାଶୋରି )
(ମରମ ତାରେ ଗୁନ୍ଥା ସେ ରୂପ )
( ଝୁଟେ ଝୁଟେ ହୋଇ ଜାଗି ଉଠେ )

—x—

( ୩୬ )

ସିନ୍ଧୁଖାମ୍ବାଜ—ଢଳାଲ୍

ତୁହି କ୍ଷଣେ କ୍ଷଣେ ଅଛୁ ମୋର ପ୍ରାଣେ ।

ସ୍ୱପନେ, ଶୟନେ, ନୟନେ, ନୟନେ ॥ ଘୋଷା ॥

ପ୍ରଭାତେ, ପ୍ରଦୋଷେ, ନିଶୀଥେ, ଦିବସେ,
ଅଲୋକେ, ଅନ୍ଧାରେ, ସଲିଳେ, ଆକାଶେ,
କେବେ ଦୂରେ, କେବେ ସନ୍ନିଧାନେ ॥

ହରଷେ, ବିଷାଦେ, ମିଳନେ, ବିବାଦେ,
ସମ୍ପଦେ ବିପଦେ, କୁଟୀରେ, ପ୍ରାସାଦେ,
ସୁଧାଧାର ଢାଳୁ କାନେ କାନେ ॥

ଅନ୍ତରେ, ବାହାରେ, ସଜନେ, ବିଜନେ
ସରଗେ, ନରଗେ, ଜୀବନେ, ମରଣେ,
ଆଉ ସଦା ମାନେ ଅପମାନେ ॥



( ୩୬ )

ଖରହରପ୍ରିୟ ଏକତାଳ

ସବୁଥିରୁ ବଞ୍ଚିତ କର
କେଉଁ ଯଶ ବାନା ଉଡ଼ାଇବ ହେ ।
ଯାହା ଦେଇଥିଲ ସବୁତ ନେଲଣି
ଆଉ ଏବେ କସ ଛଡାଇବ ହେ ॥ ଘୋଷା ॥
ସଂସାରେ ଯେ କରଇ ଆଶ,
ଧାଏଁ ସିନା ସେ ତୁମ୍ଭ ପାଶ,
ସକଳ ଭରସା ଯାର ତୁଟିଲଣି
କଥ ବୋଲି ତାକୁ ଡ଼ରାଇବ ହେ ॥
ଠକ ଠକ ଥରକୁ ଥର,
ବୁଝିଲଣି ତୁମ୍ଭ ଗୁମର,
ମନେ ପାଞ୍ଚିଛକ ହାଟ ପଞ୍ଝାରେ
ଛୁଡାକର ବାଟ ହୁଡ଼ାଇବ ହେ ॥
ତୁମ୍ଭ ଫନ୍ଦା ଏଡ଼ିବ ବୋଲି,
ଧରୁ ଧନ୍ଦା ଦେଲଣି ଠେଲି,
ଗୃହ-ଦଉଡ଼ି ଯେ କାଟି ସାରିଲଣି
କେଉଁ ଫାନ୍ଦେ ତାକୁ ଜଡ଼ାଇବ ହେ ॥
ହାତ ଠାରି ଲୋଭ ଦେଖାଇ,
ଡାକ ନାହିଁ ଦେଖିବା ପାଇଁ,
ସିହାଣ କରୁଛ ଆଡୁର ଥରେ କ
ନାକ ଢିପି କାନ ମୋଡ଼ାଇବ ହେ ॥

[ ୭୨ ]

( ୩୮ )

ଆମୋଦ—ଅଠତାଳି ।

ଛଡଡେ କରୁଛ ହଟ ହଟା ।

ହେ କପ ନ କର        ଖସି ଯାଉ ନାହିଁ

ମୋ ଦେଳକୁ ଲାଗିଛୁ ଅଠା ।

ଏଡ଼େ ବଡ଼ ପ୍ରଭୁ ପଦ ଅଣ୍ଡା କର

କରମ ଫାଶ ନ ତୁଟିଲା ମୋହର,

ତୋ ଭରସା କର, ଯେବେ ଗଲି ଖଣ୍ଡି,

ଜାଣିଲି କରମଟା ଫଟା ।।

ଜାହାକୁ କହୁଛ କଏ ନେବ ଦୁଃଖ,

ସାହାକୁ ଭଜନ୍ତୁ (ସେ) ଦେଖେ ତଜଣୁଙ୍କ,

ଦୁଷ୍ଟଙ୍କ ତାଡ଼ାଇଣି, ହୋଇଲି ଭୃତ୍ୟଙ୍କ

ଜାଳକ ହେଉଛି ଉଲଟା ।

( ୩୯ )

ପିଲୁ ବାରୁଆଁ—କାହାରବା

ତୋ ଗୃହସୁଖର ନାହିଁ ତୁଳନା ।
ଦୁଲ୍ଲଭ ଦେଇ ମିଛେ ତୁଚ୍ଛ ଖେଳନା ॥
ମୋ ଠେଇଁ ଫନ୍ଦିର ଡୋର, ଚଳିବ ନାହିଁ ଏଥର
କଲଣି ମୁଁ ତୋ ଗୃହର ତକ କଳନା ॥
ତୋ ଢେଙ୍ଗଚତୁର ଘାତ, ଭଲେ ତ ଗଲିଣି ବାଟ
ଦେଖି ଦେଖି ନାଥ ନାଥ ନୂଆ ଛଳନା ॥



( ୪୦ )

କାଫି—ଝୁମ୍ପ

ଅନ୍ତ ଜଞ୍ଜାଳ କାହିଁକି ।
ମନ କାମନା ମେଣ୍ଟିଲା ନାହିଁକି ॥
ବାମନ ହୋଇଣି ହାତ ବଢ଼ାଇଲି
ଚନ୍ଦ୍ର ଧରିବା ପାଇଁକି ।
ଶାଖା ପର ମୋର ହିଁସା ଉଡ଼ାଇଲି
ତୁଚ୍ଛରେ ଧାଇଁ ଧାଇଁକି ॥
ଦରପେ ପଡ଼ିଲି ସତ ବୋଲି ମଣି
ଗୋଡ଼ାଇ ଗଲି ଛାଇକି ।
ଧରୁ ଧରୁ ହାତୁଁ ଉଭାଇ ଗଲା ସେ
ଭକୁଆ ହେଲି ମୁହିଁକି ॥



( ୪୧ )

ବେହାଗ — ଏକତାଲି

ସଖ୍ୟଭାବ

ଠକାଇ ପାରିବ ନାହିଁ ( ମୋତେ ) ଆଉ ଏକାକୀ ।

ଠକା ଠକା, ଦେଖି ଦେଖି ଗଲିଣି ଶିଖି ॥ ଘୋ ॥

ଖେଳଣି ତୁମ ଠକା ପଣିଆ ଜଣା;

ଆଉତ ନ ହେବ କେବେ ମୁଁ ତ ଠକିତା,

ଧରିଲିଣି ସଖା ବାଟ, ରୋକିଲିଣି ପଥ ଘାଟ,

ଜାଣିବାକୁ ତୁମ୍ଭ କିଛୁ ନାହିଁତ ବାକି ।

ମନ ମୋର ଯେଉଁ ଆଡେ ଟାଣି ନେଉଛି,

ଆଖି ବୁଜି ଏକାମୁହାଁ ମୁଁ ଚାଲି ଯାଉଛି,

ପଛେ ପଛେ ଥିବ ଏକା,

ହେ ବନ୍ଧୁ ହେ ପ୍ରାଣସଖା,

ଧରିବାଟି ଠେକି, ଯେତେବେ ପଡ଼ିବି ଥକି ।



( ୪୧ )

## ପରଜ—ଏକତାଲ

ଗୃହହୀନା ମୁଁ ତବ ଦୟା, ଦୟାମୟ,
ଗୃହହୀନା ମୁଁ ତବ ଅଶୀଷ ବିଣି !
ଗୃହହୀନା ମୁଁ ତବ ସମ୍ପଦ ତରଣୀ
ସୁଖ ପାଇବାରେ ଯିବାକୁ ଭାସି !

ଦୈନ୍ୟ ମୋହର ଚିର ସହଚର,
ଅଭାବ ମୋହର ପ୍ରାଣର ଦୋସର,
କଣ୍ଟଲତା ମୋର ସାନ୍ତ୍ୱନା ପ୍ରାଣେ,
ସନ୍ତାପ ଚିର ଶାନ୍ତି ହେ;
କଣ୍ଟଲତା—ମହାଭ୍ରାନ୍ତି, ମହାଭ୍ରାନ୍ତି, ମହାଭ୍ରାନ୍ତି ହେ;
ଧାଉ ମୋତେ ନାଥ ବିଷାଦ-ବହ୍ନି
ଭସ୍ମ କର ମୋ ଅନ୍ତର,
ଦିଅ ମୋତେ ଅଣି—ମରଣ, ଯାହାକି
ମୃତ- ସଞ୍ଜିବନୀ ମନ୍ତ୍ର;
ଦୂର କର ମୋର ଗର୍ବ, ଅଭିମାନ,
କରି ଦିଅ ସବୁ ଆଶା ଅବସାନ,
ନିଭାଇ ଦିଅ ମୋ ମାନସ ପଟରୁ,
ଯେତେକ ବାସନା ସର୍ବନାଶୀ ॥

( ୪୩ )

## ବସନ୍ତ -ଏକତାଲି

ଯେତେକ ଯେତେକ ଦୁଃଖ ଦେଉଥିବ
ସେତିକି କ୍ରୋଡ଼ରେ ଧରିବ ହେ ।
ଯେତେକ ଦୂରକୁ ଘୁଞ୍ଚି ଯାଉଥିବ,
ପଛେ ପଛେ ଅନୁସରିବ ହେ ॥
ତୁମ୍ଭେ ଏକା ମୋର ନିରୁଣୀ ରତନ,
ତୁମ୍ଭ ପାଦେ ଯେନା ସମର୍ପିଛି ଜୀବନ
ଭୁଲି କେଉଁ ଦୋଷେ      କେଉଁ ମୁଖେ ରୋଷେ,
ପୁଣି ନ ଥିବ ବର ବରିବ ହେ ॥
ରଖିଲେ ବା ରଖ, ନ ରଖିଲେ ନାହିଁ,
ନାହିଁ ତ ଭାବନା ତିଳେ ତାହା ପାଇଁ,
ଛୁଟିବାକୁ ସତେ,      ଚଢ଼ାଇଲେ ଯେତେ
ପଦତଳେ ଲୋଟି ମରିବ ହେ ॥



( ୪୪ )

ଜୟଜୟନ୍ତୀ—ଆଠତାଳି

ଏବେ କାହିଁ ପୂର ନାହିଁ ମନ ସାଧ ।
କାହିଁପାଇଁ ଆଜ ସାଧ ବାଦ ।। ଘୋଷା ।।
ଯାଉଛି ଗଡ଼ି ଏତେ ଦିନ ହେଲା,
ମୂରୁଖ ତୁମ୍ଭର ତେବେ ନ ସରିଲା,
ଆଜ କେତେ ଦିନ ଲାଗିଛି ଭଲା,
ତେମନ୍ତି ବାକୁ ମୋର ଅପରାଧ ।।
ତୁମ୍ଭେ ପରା ନାଥ କାଙ୍ଗାଳି ଠାକୁର ,
ଏତିକୁ ଯେ କଥା ଗଲଣି ପାଶୋର;
ଏ ଜନକୁ ଯେବେ କରିବେ ପର,
ତୁମ୍ଭ ନାମେ ହେବ ଅପବାଦ ।।
ନେଉଁ ବାଟେ ମୋତେ ନେଉଛ ଉଦ୍ଧାର,
ନାଉଛି ମୁଁ ଗୁଣ ସେହି ବଣା ଧର,
ହେବେ କାହିଁ ତୁମ୍ଭ ପଦ ଅନ୍ତରକର,
ପଦେ ପଦେ ଘଟେ ପରମାଦ ।।



( ୪୫ )

ଖାମ୍ବାଜ—ଢେଢ଼ଏକ୍

ଖାଲି ଖିଆଲରେ ଯେବେ ଯାଏ ପଣ୍ଡି
ଦେଉ ଅଛ କର ବଢ଼ାଇ ହେ ।
ଅଂଧାରରେ ଯେବେ ଯାଏଁ ପଥ ଭୁଲି
ନେଉଅଛ ବାଟ କଢ଼ାଇ ହେ ॥ ଘୋଷା ॥

ହସାଉଛ ବେଳେ, କନ୍ଦାଉଛ କେବେଳେ,
ଲାଗି ରହିଅଛ ଖିଆଲିଆ ଖେଳେ,
ହାତ ଟେକି ଯାହା ଆଣି ଦେଉ ଅଛ
କାଲି ନେଉଅଛ ଛଡ଼ାଇ ହେ ॥

ସମ୍ପଦେ, ବିପଦେ, ହରଷେ, ବିଷାଦେ,
ସଦାବେଳେ ରହି ଅଛ ସାଥେ ସାଥେ,
ଅଜାଣତେ ତୁମ୍ଭେ ଧନରତ୍ନ ମୋର
ପଛେ ପଛେ ଅଛ ଗୋଡ଼ାଇ ହେ ॥

ଆପଣାର ହାତେ ଦେଉଛ ଖୁଆଇ,
ଶୁଆଉଛ 'ନା-ନା ବାଇ' ଗୀତି ଗାଇ,
କୋଳେ ଧରି କେବେ ଶୂନ୍ୟେ ଉଡ଼ାଉଛ,
କେବେ ଜଳେ ଦିଅ ବୁଡ଼ାଇ ହେ ॥



( ୪୬ )

ଖାଲେଡ଼ା—ଏକତାଲି

ଯେବେ ଡାକେଁ ମୁହିଁ 'ଦୟାନିଧି' ବୋଲି
ପାଶେ ଆସି ଛିଡ଼ା ହୋଇଛ ହେ !
ଦୀନବନ୍ଧୁ ବୋଲି ଯେବେ ମୁଁ ଡାକଇ
ଆପେ ଆସି ଦେଖା ଦେଉଛ ହେ !
ଡାକଇ ଯେବେ ମୁଁ ତୁମ୍ଭଙ୍କୁ କାତରେ,
"ଆସ ପ୍ରଭୁ ଆସ ଆସ" ବୋଲି ଥରେ,
ସେହି ଡାକ ମୋର ଶୁଣିବା ମାତରେ
ନିକେ ଆସି ଦୁଃଖ ଫେଡ଼ଉଛ ହେ !
(କିନ୍ତୁ) ସେ ଡାକରେ ପରା ହେ ଜୀବିତେଶ୍ୱର
ମନ ମାନି ନାହିଁ କାହାର;
ଯେଣୁ ସେହି ଡାକ ଗମ୍ଭୀର ଅନ୍ତର
ମନ୍ଦିରୁ ନଥିଲା ବାହାର ।
ତେଣୁ, ଯେବେ ଡାକ ଦେଲି ପ୍ରାଣ ଖୋଲି,
'ପ୍ରିୟତମ, ତୁମେ କାହିଁ ଗଲ' ବୋଲି,
ଝଟକରେ କାହୁଁ ଧାଇଁ ଆସି ମୋତେ
କୋଳେ ଧରି ତୋଳି ନେଉଛ ହେ !



( ୪୭ )

ବେହାଗ—ତେଓଟ

ତୋହର ବେଦନା ତୋହର ପ୍ରାଣେ,
ସବୁ ତୋହର, ସବୁ ତୋହର ।
ତୋହର ଅନ୍ତରେ ତୋହର ଆନନ୍ଦ,
ସବୁ ତୋହର ସବୁ ତୋହର ॥
ଯେତେ ମୋ ଅନୁଭବ ତୋହର ଭାବଛାୟା,
ଏ ମୋର ଅବୟବ ପରା ତୋହର କାୟା,
ତୋହର ରଙ୍ଗ ନାଟେ ତୁହୁତ ନାଟୁଅ
ତୋହର ଭବ ହାଟେ ତୁହୁତ ହାଟୁଅ;
ତୋହର ବାଟେ ଘାଟେ ବାଟୁଅ ତୁହୁତ
ସବୁ ତୋହର ସବୁ ତୋହର ॥
ହସିବାକୁ ଯେବେ ତୋହର ମନ ଟଳେ,
ଆପେ ତୁ ହସୁ ସିନା ଅମ୍ଭାତେ ହସାଇ ଛଳେ,
ମୋହର ନୟନରୁ ଯେ ଅଶ୍ରୁ ଧାରା ଝରେ,
ସେ ପରା ତୋହ ନେତ୍ର ପ୍ରାନ୍ତରୁ ଝୁରି ଆସେ,
ମୋ'ର ମୋ'ର ବୋଲି
ନବୁଝି ଆପେ ମଲି,
ସବୁ ମୋହର,————ସବୁ ତୋହର ॥



( ୪୮ )

୨ ଖାମ୍ବାଜ—ତେଉଟ

ତୁମ୍ଭର ଇଚ୍ଛା ହେଉ ପୂର୍ଣ୍ଣ ହେ,
ହେଉ ପୂର୍ଣ୍ଣ ହେ, ହେଉ ପୂର୍ଣ୍ଣ ହେ ।
ମୋର ସକଳ ବାସନା, ସକଳ କାମନା,
ତବ ପଦେ ହେଉ ଚୂର୍ଣ୍ଣ ହେ ॥ ଘୋଷା ॥

ଭାଙ୍ଗି ଯାଉ ମୋର ମନ ଅଟ୍ଟାଳିକା,
ଝଡ଼ି ପଡ଼ୁ ଆଶା-କୁସୁମ-କଳିକା,
ସଂସାରର ହାଟ ସାରି ଦିଅ, ମୋର
ହାଟ କରି ଦିଅ ଶୂନ୍ୟ ହେ ॥

ରୋଧ କରିଦିଅ ଇନ୍ଦ୍ରିୟର ଗତି,
ଚଳି ଯାଉ ପୁତ୍ର, କଳତ୍ର, ସମ୍ପତ୍ତି,
ଶିର ପାତି ନେବି ଆଦେଶ ତୁମ୍ଭର,
ହେବ ନାହିଁ ଚିତ୍ତ କ୍ଷୁଣ୍ଣ ହେ ॥



( ୪୯ )

ଭୈରବୀ – ତେଉରା

ଫୁଲଟି ଯେବେ ମୋର ଏ ଅନ୍ତର
ସେ ତୋ କୁଞ୍ଜବନେ
ଯାଇ ଫୁଟଇ ହେ ।
ଗୀତଟି ଯେବେ ମୋର ଗାଏ ସ୍ୱର
ସେ ତୋ ଗୁଞ୍ଜରଣେ
ଜାଗି ଉଠଇ ହେ ।

ଏକାକୀ ବାଇ ବାଇ ଯେବେ ମୁଁ ଥକାହୋଇ,
ଏମ୍ନାରେ ବାଣୀଟିକୁ ଉହାଡ଼େ ଦିଏଁ ଥୋଇ,
ଅପସ୍ୱ ସେ ମୁରତି ଅକୁଳେ ଲୁଟି
ତୋର ବଂଶୀ ତାନେ ତାନେ ରଟଇ ହେ ॥
ବ୍ୟର୍ଥ ଜୀବନର ଲକ୍ଷ ବ୍ୟଥା ମର୍ମ
ବକ୍ଷେ ଫୁଟେ ଭବ ..ରକ୍ତ ଜବା ସମ,
(ମୋ) ନୟନ ନୀର ଧାର ଚରଣ ତଳ ତୋର
ଅର୍ଘ୍ୟ ରୂପେ ପଡ଼ି ଲୋଟଇ ହେ ॥



( ୫୦ )

ମୁଲତାନ – ଯତ୍

ଅଟଲ୍ଲଡ଼ା ତୁ ଅସୁ ଅପେ ଅଟପ ପୁଣି
ଲେଉଟଲେ ନ ଦେଉ ଦେଖା ଗୋ !
ମୀର ହୃଦରଅ ! ତୋହ୍ର କଥା ଚିନା
ଘୋଟେହିଁ ସୁନ୍ଦର ଏକା ଗୋ । ଘୋ' ॥

ଛୁଞ୍ଚାରେ ତାହାଁଙ୍କ ଏତେ ନାଚ ଖେଳ,
କାହିଁକ ଯେ ଏତେ ଛଳନା;
ଭାବ ଭାବ ଭାବ ଏନ୍ତା କଥାଟିକ,
ଧରି ନ ପାରଲି ଚଳନା;
ଅପଣା ମନକୁ ଅଟପ ଅସୁ ଯାଉ
ଗତେକ ବେଳକୁ ଦେହଛପା ଦେଇ
ମନ ଭୁଲଣିଆ ଏଭଳି ଦରଜା
କେଉଁ ପାଇଟିକ ଲେଖା ଗୋ ॥



( ୫୧ )

ଭିମ ପଲ୍ଲ ଶ୍ରୀ—କାଓ୍ୱାଲି

ତୁମ୍ଭେ ଯଦି ମଙ୍ଗଳ ଆଳୟ ଏ ଭୁବନେ ।
ତ୍ରିତାପେ ତାପିତ କିମ୍ପା ତନୁ ମୋର ଅନୁକ୍ଷଣେ ।
ତୁମ୍ଭ ରାଜ୍ୟ ପର ନାହିଁ କେହୁ ଦୁଃଖୀ,
ତେହିଁରୁ ତାହାର ଏକୁଟିଏ ମୁଁ କି ?
ଅହର୍ ଲୋତକ ଧାର ଅଛୁ କି ହେ ମୋ କରମେ ।
କର୍ମଫଳ ଭୋଗିବାକୁ ଯଦି ଭବେ ଲେଖିଛ,
ଜଗତେ ମୋ ହସ୍ତ ପଦ କାମ୍ପା ବାନ୍ଧି ରଖିଛ,
କର୍ମେ ଯଦି ମୋର ଅଧିକାର ନାହିଁ
କର୍ମଫଳ ଲାଗି କାହୁଁ ହେବ ଦାୟୀ;
ଜାଣିଲି ଚତୁର ଏବେ, ଭାବେ ତାହା ମନେ ମନେ ।



( ୫୧ )

ସୁରଟ ମହ୍ଲାର—ଏକତାଲି

( ଆଜ ) ଧାର୍ଦ୍ଧ ବାଦଲ ରାତି ।

ଗୁରୁ ଗୁରୁ ଗୁରୁ ଘନ ଗରଜନ
ଦୂରୁ ଦୂରୁ ଦୂରୁ ସ୍ମୃତି ॥ ଘୋଷା ॥
ଝଁଲ ଝଁକ ଝଲ ବିଜୁଳି ଚମକେ,
ଝମକି ଉଠଇ ବୁଝୁ ଦକ ଦକେ,
ଅଧୁଷ୍ଟ କୁ ସଠଶ ଏ ଘୋର ନିଶୀଥେ
ଆଜି ମୋ ପରଣ ସାଥୀ ॥
ସନ ସନ ସନ ଉଠିଲା ପବନ
ଝମ ଝମ ବାରି ବରଷେ ॥
ଝର ଝର ଝରେ ନୟନ ଆସାର
ବହଇ ଶ୍ୱାସ ଖର ସେ ;
ଛନ ଛନ ଛନ ଅନ୍ତର ଭିତରେ,
ଘନ ଘନ ଘନ ଅପଘନ ଥରେ,
ଜାଗରେ ଚାହିଁ ନିଶି ଚଲି ଯାଉଁ
ବିଫଳ ଶୟନ ପାତି ।

—*—

( ୫୩ )

ବାଉଲ୍ ସ୍ୱର

କେ ତମାତେ ବାଇଥିାକର
ଅରେ ମୋର ବାଇଥା ରଜା ।
ନାଚଇ ମୁ ଲଙ୍ଗଳା ହୋଇ
(ତୁ) ତାଳ ମାର ଦେଖିବୁ ମଜା ॥ଘୋ॥

ତାଳ ମାନ ନମାନ ବନ୍ଧ
ମନ ଇଚ୍ଛ ଯିବମୁଁ ନାଚି,
ଜହାଜରେ ରହିବୁ ଲଚି,
ଉବ ଉବ ଡ଼ମ୍ବୁରୁ ବଜା ॥

ଫଟକରେ ଅଟକ ରହୁ,
ଚଲିବି ମୁଁ ବେଦମ ହୋଇ
ଏକା ଥରେ ମାରବ ଉଅଁ
ଉଡାଇ-ଦେବ ମୁକ୍ତି ଧ୍ୱଜା ॥





ମୁଦ୍ରାକର

ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ର ବି, ଏ ।

ଗୋପୀନାଥ ପ୍ରେସ—ଭଦ୍ରକ ।



